ISSN: 2456-9194, Vol. II, Issue. III, Dec. 2018



# ପ୍ରତ୍ୟୟ

(Journal of Odia Language, Culture and Science)

JournalHomepage:http://cphfs.in/research.php

# କମ୍ପ୍ୟୁଟରରେ ଓଡ଼ିଆ ଭାଷାର ବ୍ୟବହାର କ୍ରମରେ ଇଂରାଜୀ - ଓଡ଼ିଆ ଲିପ୍ୟନ୍ତରଣ

**ଡକ୍ଟର ରୁଦ୍ର ପ୍ରସାଦ ମିଶ୍ର**

ନାରଦୀୟା, ବାଲିକୁଦା, ଜଗତସିଂହପୁର

ଫୋନ୍ ନଂ: ୯୭୭୮୯୫୧୪୧୮

E-mail: rudrabindas2009@gmail.co

***ସଂକ୍ଷିପ୍ତ ସାର:*** *ଲିପ୍ୟନ୍ତରଣ କହିଲେ ଆମେ ମୁଖ୍ୟତଃ ବୁଝିଥାଉ ଯେ, ଗୋଟିଏ ଭାଷାର ଆକ୍ଷରିକ ଅନୁବାଦ ନକରାଯାଇ ତାହାର ଲିପିକୁ ପରିବର୍ତ୍ତନ କରିବା, ଅର୍ଥାତ୍ ଗୋଟିଏ ଭାଷାର ଲିପିକୁ ଅନ୍ୟ ଏକ ଲିପିରେ ପରିବର୍ତ୍ତନ କରିବା । ଗୋଟିଏ ଭାଷା ଶିକ୍ଷା କରି ତାହାକୁ ପାଠ କରିବା ଏକ ଦୁରୁହ ବ୍ୟାପାର ନିଶ୍ଚୟ । କାରଣ ଯେଉଁ ଭାଷାକୁ ପାଠ କରାଯାଏ ତାହାର ଲିପିକୁ ଜାଣିବା ନିହାତି ଦରକାର ନଚେତ ସେ ଭାଷା ଆମକୁ ଅବୋଧ ମନେ ହୋଇଥାଏ । ଗୋଟିଏ ଭାଷାକୁ ଅନ୍ୟ ଏକ ଭାଷାର ଲିପିରେ ପ୍ରକାଶ କରି ପାରିଲେ ତାହା ଆମକୁ ସହଜବୋଧ ହୋଇଥାଏ । ମୁଖ୍ୟତଃ ଲିପ୍ୟନ୍ତରଣ ବେଳେ କେତୋଟି ନିର୍ଦ୍ଦିଷ୍ଟ ଦିଗପ୍ରତି ଧ୍ୟାନ ଦିଆଯାଇଥାଏ, ଯେପରିକି ଗୋଟିଏ ଭାଷାର ସ୍ୱରବର୍ଣ୍ଣ, ବ୍ୟଞ୍ଜନ ବର୍ଣ୍ଣ ବା ଲିପି ସେହି ଭାଷାର ଧ୍ୱନ୍ୟାନୁକରଣ ତାହାର ଗାଠନିକ ସୌନ୍ଦର୍ଯ୍ୟ ତଥା ଶ୍ରୁତି ମଧୁରତା ଇତ୍ୟାଦି କେତୋଟି ଦିଗପ୍ରତି। ଲିପ୍ୟନ୍ତରଣ ସମୟରେ ଗୋଟିଏ ଭାଷାର ଲିପି ପରିବର୍ତ୍ତେ ଅନ୍ୟ ଏକ ଭାଷାର ଲିପି ବ୍ୟବହାର କରାଯାଏ । ଏହି ଲିପି ପ୍ରଥମଭାଷାର ଗାଠନିକ ବର୍ଣ୍ଣନାନୁସାରେ ଦ୍ୱିତୀୟ ଭାଷାର ଲିପି ବ୍ୟବହୃତ ହୋଇଥାଏ । ଲିପ୍ୟନ୍ତରଣ ଫଳରେ ଗୋଟିଏ ଭାଷାର ସମସ୍ତ ବିଶେଷତ୍ୱ ତଥା ସେହି ଭାଷାର ବ୍ୟବହାର ଅନୁଯାୟୀ ଲିପ୍ୟନ୍ତରଣ କରାଯାଇଥାଏ ।*

***ପ୍ରମୁଖ ଶବ୍ଦାବଳୀ:*** *ଲିପ୍ୟନ୍ତରଣ, ଲିପି, ସ୍ୱରବର୍ଣ୍ଣ, ବ୍ୟଞ୍ଜନବର୍ଣ୍ଣ, ଧ୍ୱନ୍ୟାନୁକରଣ*

ଆମର ନୀତିଦିନିଆ ଜୀବନରେ ବହୁଳ ବ୍ୟବହୃତ ଓ ବେଶ୍ ପରିଚିତ ଯନ୍ତ୍ର ହେଉଛି କମ୍ପ୍ୟୁଟର । ସକାଳରୁ ରାତି ପର୍ଯ୍ୟନ୍ତ ଆମେ ଯେ ତା' ଉପରେ କେତେ ନିର୍ଭରଶୀଳ ହୋଇ ପଡୁଛେ ତାହା ଆଜିକା ସମୟରେ କହିବା ବୃଥା । ଏହା ଯେ ଏବେ କେବେଳ ଶିକ୍ଷିତ ଗୋଷ୍ଠୀମାନଙ୍କ ଭିତରେ ଆଉ ସୀମିତ ହୋଇ ରହିନାହିଁ, ବ୍ୟାଙ୍କରୁ ଟଙ୍କା ଉଠାଇବା, ବଜାରରୁ ହେଉ କିମ୍ବା ଅନଲାଇନ୍‌ରେ ଜିନିଷପତ୍ର କିଣିବା, ଟ୍ରାଭେଲ୍ ସଂସ୍ଥାରୁ ଗାଡ଼ି ଭଡ଼ାରେ ନେବା,ରେଳ ବା ଉଡ଼ାଜାହାଜରେ ଯିବାପାଇଁ ଟିକଟ କରିବା ଏବଂ ସ୍କୁଲ୍ କଲେଜ୍ ନାମ ଲେଖାଇବା ଓ ପ୍ରତିଯୋଗିତାମୂଳକ ପରୀକ୍ଷା ପାଇଁ ଆବେଦନ କରିବା ବେଳେ ଆମେ କମ୍ପ୍ୟୁଟରର ସାହାଯ୍ୟ ନେଇଥାଉ । ଖାଲି ସେତିକି ନୁହେଁ, ଦୂରରେ ରହୁଥିବା ବନ୍ଧୁଙ୍କୁ ଚିଠିପତ୍ର ଆଖି ପିଛୁଳାକେ ଦେବାପାଇଁ ମଧ୍ୟ ଆମେ ଇ-ମେଲର ସାହାଯ୍ୟ କମ୍ପ୍ୟୁଟର ମାଧ୍ୟମରେ କରିଥାଉ । ସବୁଠୁ ବଡ଼ କଥା ହେଲା ଚିକିତ୍ସା କ୍ଷେତ୍ରରେ ଆମେ ମଧ୍ୟଏହି କମ୍ପ୍ୟୁଟର ଉପରେ ନିର୍ଭର କରୁଛେ। ଇଣ୍ଡସ୍କୋପି ହେଉ ବା ଅଲଟ୍ରା ସାଉଣ୍ଡ ବେଉ ବା ଏମ୍.ଆର୍.ଆଇ ହେଉ ସବୁଥିରେ ଆମେ କମ୍ପ୍ୟୁଟରର ସାହାଯ୍ୟ ନେଉଛେ। ଅତଏବ୍ ମୋଟ୍ ଉପରେ କହିବାକୁ ଗଲେ ଏ ଯୁଗରେ କମ୍ପ୍ୟୁଟର ଆମପାଇଁ ବହୁତ ଜରୁରୀ ହେଇ ପଡୁଛି।

ଶିକ୍ଷା, ଅଧ୍ୟୟନ ଓ ଗବେଷଣା କ୍ଷେତ୍ରରେ ଆମେ କମ୍ପ୍ୟୁଟର ଉପରେ ପ୍ରାୟତଃ ନିର୍ଭର କରୁଛେ ବୋଲି କହିଲେ କିଛି ଭୂଲ୍ ହେବ ନାହିଁ । ଦିନ ଥିଲା କୌଣସି ପ୍ରସଙ୍ଗ ଉପରେ ତଥ୍ୟ ପାଇବାକୁ ହେଲେ ଆମକୁ ଚାରିଆଡ଼ ଘୁରିବାକୁ ପଡୁଥିଲା, ବିଭିନ୍ନ ବିଶେଷଜ୍ଞଙ୍କ ସହ ପରାମର୍ଶ କରିବାକୁ ପଡୁଥିଲା, ମାତ୍ର ଏବେ ସେ ଅସୁବିଧାର ଅନ୍ତ ହୋଇଛି। ଘରେ ବସି କମ୍ପ୍ୟଟର ଓ ଇଣ୍ଟରନେଟ୍ ମାଧ୍ୟମରେ ଅତି ସହଜରେ କମ୍ ଖର୍ଚ୍ଚରେ ଆମେ ବିଭନ୍ନ ତଥ୍ୟ ଉପଲବ୍ଧି କରିପାରୁଛେ । ପୁନଶ୍ଚ ଘରେ ବସି ଶିକ୍ଷାଲାଭ କରିବାର ବ୍ୟବସ୍ଥା ମଧ୍ୟ ଆଜିର ଅଧ୍ୟାୟୀଙ୍କୁ ବିଶେଷ ସହାୟକ ହେଉଛି । ଯଦି ଏହି ସବୁ କଥାକୁ ଆଲୋଚନାର ପରିସରଭୁକ୍ତ କରାଯାଇ ପାରୁଛି, ତେବେ ଓଡ଼ିଆ ଭାଷାକୁ କମ୍ପ୍ୟୁଟରୀକରଣ କରିବା କେତେଯେ ଜରୁରୀ ହୋଇ ପଡୁଛି, ତାହା ଯେ କେହି ଓଡ଼ିଆ ଭାଷାପ୍ରେମୀ ବୁଝିପାରିବେ।

ଓଡ଼ିଆ ଭାଷାକୁ କମ୍ପ୍ୟୁଟରୀକରଣ କଥାର ପ୍ରସଙ୍ଗ ଉଠିଲେ ଆମେ ଭାବୁଯେ ଓଡ଼ିଆ ଡି.ଟି.ପି.। ଏହା ସମ୍ପୂର୍ଣ୍ଣ ଭୁଲ୍ କଥା । ପ୍ରକୃତ କଥାଟି ହେଉଛି କମ୍ପ୍ୟୁଟର ନିର୍ମାଣବେଳେ ଇଂରାଜୀ ଭାଷାକୁ ଏହାର ମୂଳ ଭାଷାରୂପେ ରଖାଯାଇଥାଏ। ଫଳରେ ଆମେ ଯେତେବେଳେ କମ୍ପ୍ୟୁଟରଟି ଖୋଲୁ ତାହା ଖୋଲିବାମାତ୍ରେ ଇଂରାଜୀ ଭାଷା ଆସିଥାଏ। ଅନୁରୂପ ଭାବେ ଇଂରାଜୀ କୀ-ବୋର୍ଡ଼ ମଧ୍ୟ କମ୍ପ୍ୟୁଟର ସହ ସଂଯୁକ୍ତ ହୋଇଥାଏ। ତେଣୁ ଇଂରାଜୀ ବ୍ୟତୀତ ଅନ୍ୟ କୌଣସି ଭାଷାକୁ କମ୍ପ୍ୟୁଟରରେ ବ୍ୟବହାର କରିବାକୁ ହେଲେ ମୁଖ୍ୟତଃ ଦୁଇଟି ବିଷୟ ପ୍ରତି ଧ୍ୟାନ ଦେବା ଆବଶ୍ୟକ। ଓଡ଼ିଆ ଭାଷା କ୍ଷେତ୍ରରେ ମଧ୍ୟ ତାହା ନିହାତି ଆବଶ୍ୟକ।

୧. କମ୍ପ୍ୟୁଟରରେ ଓଡ଼ିଆ ଅକ୍ଷର (ଫଣ୍ଟ୍) ପ୍ରସ୍ତୁତି କରିବା ଏବଂ ତାହାକୁ ବ୍ୟବହାର ଉପଯୋଗୀ କରାଇବା

୨. ଓଡ଼ିଆରେ ବ୍ୟବହୃତ ସମସ୍ତ ଲିପି, ମାତ୍ରା, ଫଳା ଓ ଚିହ୍ନଗୁଡ଼ିକୁ ନେଇ ଏକ କି-ବୋର୍ଡ଼ ପ୍ରସ୍ତୁତ କରିବା ଓ ତାହା ଯେ କୌଣସି କମ୍ପ୍ୟୁଟରରେ ଚାଲିବା ପାଇଁ ପ୍ରୋଗ୍ରାମ୍ ପ୍ରସ୍ତୁତ କରି ତାହାକୁ କମ୍ପ୍ୟୁଟରରେ ସ୍ଥାନିତ କରିବା।

ଉପରୋକ୍ତ ଦୁଇଟି ଆବଶ୍ୟକତା ପୂରଣ ହେଲେ କୌଣସି ଭାଷା କମ୍ପ୍ୟୁଟର ବ୍ୟବହାର ଉପଯୋଗୀ ହୋଇପାରିଥାଏ । ମାତ୍ର ଏପରି ବ୍ୟବହାରକୁ ଆମେ ଏକ ଆଧୁନିକ ଲିଖନ ପ୍ରଣାଳୀ ଭାବେ କେବଳ ଗ୍ରହଣ କରିପାରିବା। ଅର୍ଥାତ୍, ପୂର୍ବ କାଳରେ ଆମେ ତାଳପତ୍ର ଓ ଲେଖନୀ ଦ୍ୱାରା ଲିପିବଦ୍ଧ କରୁଥିଲେ, ପରେ କଲମ କାଗଜରେ ଲିପିବଦ୍ଧ କଲେ, ତା'ପରେ ଛାପାକଳ ଓ ଟାଇପ୍ ମେସିନ୍‌ରେ ଲେଖିଲେ। ବର୍ତ୍ତମାନ କମ୍ପ୍ୟୁଟର ମାଧ୍ୟମରେ ଲେଖିପାରିବା। ଲେଖିବା ଓ ଛାପିବାର ଏହା ବର୍ତ୍ତମାନ ସବୁଠାରୁ ଉନ୍ନତ ସାଧନା। ଏହି ଆବଶ୍ୟକତା ଅଳ୍ପେ ବହୁତେ ସବୁ ଭାଷାରେ ରହିଛି, ଓଡ଼ିଆ ଭାଷାର ଏ ଆବଶ୍ୟକତା ୧୯୯୦ ମସିହାରୁ ପୂରଣ ହୋଇଛି, ଅର୍ଥାତ୍ ଏହି ବର୍ଷ ଓଡ଼ିଆ ଭାଷାର ଅକ୍ଷର ସମୂହକୁ ଆମେ କମ୍ପ୍ୟୁଟରରେ ଟାଇପ୍ କରିପାରିଛେ ଓ ପ୍ରିଣ୍ଟର୍‌ରେ ଛାପିପାରିଛେ। ଏହା ଏକ ଭାଷାକୁ କମ୍ପ୍ୟୁଟରରେ ବ୍ୟବହାର କରିବାର ପ୍ରଥମ ପର୍ଯ୍ୟାୟର ସଫଳତା।

ଭାଷାକୁ କମ୍ପ୍ୟୁଟର ଉପଯୋଗୀ କରିବାର ଦ୍ୱିତୀୟ ପର୍ଯ୍ୟାୟ ହେଉଛି: କମ୍ପ୍ୟୁଟର ସେହି ଭାଷାକୁ ବୁଝିବା। କମ୍ପ୍ୟୁଟର ବିଭିନ୍ନ ପ୍ରୋଗ୍ରାମ୍ ଦ୍ୱାରା ଏକ ଭାଷାକୁ ବୁଝେ । ଏଥିପାଇଁ ଅପରେଟିଂ ସିଷ୍ଟମ୍‌କୁ ନୂତନ ଭାଷା ସହ ସଂଯୁକ୍ତ କରିବା ଆବଶ୍ୟକ। ଏଥିପାଇଁ ଭାଷାକୁ ୟୁନିକୋଡ ପଦ୍ଧତିଭୁକ୍ତ ହେବା ଏକାନ୍ତ ଜରୁରୀ। ୟୁନିକୋଡ ଦ୍ୱାରା ପୃଥିବୀର କମ୍ପ୍ୟୁଟର ଉପଯୋଗୀ ଭାଷା ସମୂହର ଲିପିଗୁଡ଼ିକ ଏକ ଏକ କୋର୍ଡ଼ ପ୍ରଦାନ କରାଯାଇଛି। ଏହି କୋଡକୁ ଅପରେଟିଂ ସିଷ୍ଟମ୍ ବୁଝିପାରେ। ଫଳରେ କମ୍ପ୍ୟୁଟରରେ ସେହି ଭାଷାର ନାମକରଣ କରିବା, ଅ ଠାରୁ କ୍ଷ କ୍ରମରେ ସଜାଇବା, କୌଣସି ସେହି ଭାଷାରେ ନାମିତ ଫାଇଲ୍ ବା ଫୋଲ୍ଡ଼ରକୁ ଅନ୍ୱେଷଣ କରିବା କୌଣସି ଭୁଲ୍ ଶବ୍ଦ ଖୋଜି ଠିକ୍ ଶବ୍ଦକୁ ବିସ୍ଥାପନ କରିବା ଇତ୍ୟାଦି କାର୍ଯ୍ୟଗୁଡ଼ିକ ୟୁନିକୋର୍ଡ଼ ଦ୍ୱାରା ସମ୍ଭବ ହୋଇଥାଏ। ଆନନ୍ଦର ବିଷୟ, ଓଡ଼ିଆ ଭାଷାର ଲିପି ସମୂହ ୨୦୦୬ ମସିହାରେ ଏହି ୟୁନିକୋର୍ଡ଼' ପର୍ଯ୍ୟାୟଭୁକ୍ତ ହୋଇପାରିଛି । ଏହି କ୍ଷେତ୍ରରେ ଭାରତୀୟ ଭାଷାମାନଙ୍କ ମଧ୍ୟରେ ଓଡ଼ିଆ ତୃତୀୟ।

ପରେ କୌଣସି ଭାଷାକୁ କମ୍ପ୍ୟୁଟର ଉପଯୋଗୀ କରିବାର ତୃତୀୟ ଏବଂ ଗୁରୁତ୍ୱପୂର୍ଣ୍ଣ ପର୍ଯ୍ୟାୟ ହେଉଛି: କମ୍ପ୍ୟୁଟରରେ ସେହି ଭାଷାରେ ପ୍ରୋଗ୍ରାମ୍ ପ୍ରସ୍ତୁତ କରିବା ଓ ସଫ୍ଟୱୟାର୍ ଦ୍ୱାରା ତାହାକୁ ବ୍ୟବହାର ଉପଯୋଗୀ କରିବା ଖୁସିର କଥା । ୨୦୦୭ ମସିହାରୁ ଓଡ଼ିଆ ଭାଷାରେ ପ୍ରଥମେ ପ୍ରୋଗ୍ରାମ୍ ପ୍ରସ୍ତୁତ କରାଯାଇଛି ଓ ବର୍ତ୍ତମାନ ଓଡ଼ିଆ ଭାଷାରେ ବେଶ୍‌କିଛି ସଫ୍ଟୱୟାର ନିର୍ମାଣ କରାଯାଇ ବ୍ୟବହାର କରିବା ପାଇଁ ଉଦ୍ୟମ ହେଉଛି । ସେହି କ୍ରମରେ କମ୍ପ୍ୟୁଟରରେ ଇଂରାଜୀ – ଓଡ଼ିଆ ଲିପ୍ୟନ୍ତରଣକୁ ଆଲୋଚନାର ପରିସରଭୁକ୍ତ କରାଯାଇପାରେ।

ସାଂପ୍ରତିକ ସମୟରେ ବୈଜ୍ଞାନିକ ଜ୍ଞାନ କୌଶଳ ସହିତ ତାଳ ଦେଇ ସୂଚନା ଓ ପ୍ରଯୁକ୍ତିବିଦ୍ୟା (Information Technology)ଯେତେ ଆଗକୁ ବଢିବାରେ ଲାଗିଛି, ସେହି ଅନୁସାରେ ତା'ର ବ୍ୟବହାର ମଧ୍ୟ ଆମ ମାନଙ୍କର ଆବଶ୍ୟକୀୟ ହୋଇପଡ଼ିଛି । ଛୋଟ ଛୋଟ କାମ ଠାରୁ ଆରମ୍ଭ କରି ବଡ଼ ବଡ଼ ଜ୍ଞାନ-କୌଶଳରେ କମ୍ପ୍ୟୁଟରର ବ୍ୟବହାର ଦେଖିବାକୁ ମିଳୁଛି । କମ୍ପ୍ୟୁଟର ବର୍ତ୍ତମାନ ଆମ ମାନଙ୍କ ଜୀବନ ସହିତ ଅଙ୍ଗାଙ୍ଗୀଭାବେ ଜଡ଼ିତ ହୋଇଗଲାଣି କହିଲେ ଅତ୍ୟୁକ୍ତି ହେବନାହିଁ । ମଣିଷ ଆଜି ଯେତେବେଳେ ଚନ୍ଦ୍ରପୃଷ୍ଠରେ ଜଳର ସନ୍ଧାନ କରିବା ପାଇଁ ସେଠାରେ ନିଜର ଜ୍ଞାନକୌଶଳ ପ୍ରୟୋଗ କରି ପହଞ୍ଚି ପାରିଛି, ସେପରି କ୍ଷେତ୍ରରେ, ବିଜ୍ଞାନ ସହିତ କମ୍ପ୍ୟୁଟରବିଦ୍ୟା ମୁଖ୍ୟଭୂମିକା ଗ୍ରହଣ କରିଛି । ଆଜିର ଦୈନନ୍ଦିନ ଜୀବନରେ କମ୍ପ୍ୟୁଟରକୁ ଏକ ବହୁ ଆବଶ୍ୟକୀୟ ମାଧ୍ୟମ ଭାବରେ ଗ୍ରହଣ କରାଯାଉଛି । କମ୍ପ୍ୟୁଟର୍ ବିନା ବର୍ତ୍ତମାନ କୌଣସି କାର୍ଯ୍ୟ କରିବା ପ୍ରାୟତଃ ସମ୍ଭବପର ନୁହେଁ । ତେଣୁ କମ୍ପ୍ୟୁଟରରେ ସାଧାରଣ ଡି.ଟି.ପି ଠାରୁ ଆରମ୍ଭ କରି ଡାକ୍ତରଖାନା, ସରକାରୀ ଦପ୍ତର, ବ୍ୟବସାୟ ବାଣିଜ୍ୟ ଆଦି ବିଭିନ୍ନ କ୍ଷେତ୍ରରେ ଆବଶ୍ୟକ ହେଉଅଛି । ଶିକ୍ଷା କ୍ଷେତ୍ରରେ ମଧ୍ୟ କମ୍ପ୍ୟୁଟରର ଭୂମିକା ଅତିବ ଗୁରୁତ୍ୱପୂର୍ଣ୍ଣ । ଆଜିର ବ୍ୟସ୍ତ ୱେବ୍ ବହୁଳ ଜୀବନରେ ଇଣ୍ଟରନେଟ୍, ଚାଟିଂ, ମେଲ୍ ଆଦି ବିଭିନ୍ନ କ୍ଷେତ୍ରରେ କମ୍ପ୍ୟୁଟରର ବ୍ୟବହାର କରାଯାଉଅଛି। ଏପରି କ୍ଷେତ୍ରରେ ଭାଷା ସାହିତ୍ୟକୁ କମ୍ପ୍ୟୁଟରରେ ପ୍ରୟୋଗ ଉପଯୋଗୀ କରି ତାହାକୁ କାର୍ଯ୍ୟକ୍ଷମ କରିବାର ଆବଶ୍ୟକତା ଅନୁଭୂତ ହେଉଅଛି । କେବଳ ଯେ କୌଣସି ଭାଷାକୁ କମ୍ପ୍ୟୁଟର ଉପଯୋଗୀ କରି କାର୍ଯ୍ୟକ୍ଷମ କରିଦେଲେ ତାହାର ପୂର୍ଣ୍ଣାଙ୍ଗ ବିକାଶ ତଥା କମ୍ପ୍ୟୁଟର୍‌ରେ ପ୍ରୟୋଗ ସଫଳ ହେଲା ବୋଲି କୁହାଯାଇ ନପାରେ, ତେଣୁ ତାହାକୁ ବ୍ୟବହାର ଉପଯୋଗୀ କରି ସମଗ୍ର ବିଶ୍ୱ ଦରବାରରେ ଉପସ୍ଥାପିତ କରିବାର ଆବଶ୍ୟକତା ରହିଅଛି । ଭାଷା କ୍ଷେତ୍ରରେ ବର୍ତ୍ତମାନ କମ୍ପ୍ୟୁଟର ଲିପ୍ୟନ୍ତରଣର ଚିନ୍ତା କରାଯାଉଅଛି । କମ୍ପ୍ୟୁଟର ମଧ୍ୟରେ ବର୍ତ୍ତମାନ ଗୋଟିଏ ଭାଷାରୁ ଅନ୍ୟ ଏକ ଭାଷାକୁ ଲିପ୍ୟନ୍ତରଣ (Transliteration)ର ଆବଶ୍ୟକତା ମଧ୍ୟ ହେଉଅଛି । ଯାହା ଫଳରେକି କୌଣସି ଗୋଟିଏ ଭାଷାକୁ ଶିକ୍ଷା କରି ତାହାକୁ ପାଠ କରିବାରେ ସହଜ ହେବ ଏବଂ ଭାଷାକୁ ଲିପ୍ୟନ୍ତରଣ ମାଧ୍ୟମରେ ସହଜରେ ପଢି ମନେ ରଖାଯାଇ ପାରିବ । ଶିକ୍ଷା କ୍ଷେତ୍ରରେ ମଧ୍ୟ ଏହାର ଆବଶ୍ୟକତା ଅନୁଭୂତ ହେଉଅଛି ।

ଲିପ୍ୟନ୍ତରଣ କହିଲେ ଆମେ ମୁଖ୍ୟତଃ ବୁଝିଥାଉ ଯେ, ଗୋଟିଏ ଭାଷାର ଆକ୍ଷରିକ ଅନୁବାଦ ନକରାଯାଇ ତାହାର ଲିପିକୁ ପରିବର୍ତ୍ତନ କରିବା, ଅର୍ଥାତ୍ ଗୋଟିଏ ଭାଷାର ଲିପିକୁ ଅନ୍ୟ ଏକ ଲିପିରେ ପରିବର୍ତ୍ତନ କରିବା । ଗୋଟିଏ

ଭାଷା ଶିକ୍ଷା କରି ତାହାକୁ ପାଠ କରିବା ଏକ ଦୁରୁହ ବ୍ୟାପାର ନିଶ୍ଚୟ, କାରଣ ଯେଉଁ ଭାଷାକୁ ପାଠ କରାଯାଏ ତାହାର ଲିପିକୁ ଜାଣିବା ନିହାତି ଦରକାର ନଚେତ ସେ ଭାଷା ଆମକୁ ଅବୋଧ ମନେ ହୋଇଥାଏ । ଗୋଟିଏ ଭାଷାକୁ ଅନ୍ୟ ଏକ ଭାଷାର ଲିପିରେ ପ୍ରକାଶ କରି ପାରିଲେ ତାହା ଆମକୁ ସହଜବୋଧ ହୋଇଥାଏ। ମୁଖ୍ୟତଃ ଲିପ୍ୟନ୍ତରଣ ବେଳେ କେତୋଟି ନିର୍ଦ୍ଦିଷ୍ଟ ଦିଗପ୍ରତି ଧ୍ୟାନ ଦିଆଯାଇଥାଏ ଯେପରିକି ଗୋଟିଏ ଭାଷାର ସ୍ୱରବର୍ଣ୍ଣ, ବ୍ୟଞ୍ଜନ ବର୍ଣ୍ଣ ବା ଲିପି ସେହି ଭାଷାର ଧ୍ୱନ୍ୟାନୁକରଣ ତାହାର ଗାଠନିକ ସୌନ୍ଦର୍ଯ୍ୟ ତଥା ଶ୍ରୁତି ମଧୁରତା ଇତ୍ୟାଦି କେତୋଟି ଦିଗପ୍ରତି। ଲିପ୍ୟନ୍ତରଣ ସମୟରେ ଗୋଟିଏ ଭାଷାର ଲିପି ପରିବର୍ତ୍ତେ ଅନ୍ୟ ଏକ ଭାଷାର ଲିପି ବ୍ୟବହାର କରାଯାଏ। ଏହି ଲିପି ପ୍ରଥମଭାଷାର ଗାଠନିକ ବର୍ଣ୍ଣନାନୁସାରେ ଦ୍ୱିତୀୟ ଭାଷାର ଲିପି ବ୍ୟବହୃତ ହୋଇଥାଏ। ଲିପ୍ୟନ୍ତରଣ ଫଳରେ ଗୋଟିଏ ଭାଷାର ସମସ୍ତ ବିଶେଷତ୍ୱ ତଥା ସେହି ଭାଷାର ବ୍ୟବହାର ଅନୁଯାୟୀ ଲିପ୍ୟନ୍ତରଣ କରାଯାଇଥାଏ । ପୁନଶ୍ଚ କୁହାଯାଇପାରେ ଯେ ଲିପ୍ୟନ୍ତରଣ ଅର୍ଥ ଲିପିର ପରିବର୍ତ୍ତନ ଛଡ଼ା ଅନ୍ୟ କିଛି ନୁହେଁ, କାରଣ ଯେଉଁ ଭାଷାର ଲିପ୍ୟନ୍ତରଣ କରାଯାଏ, ସେହି ଭାଷାର ସମସ୍ତ ବୈଶିଷ୍ଟ୍ୟ ଲିପ୍ୟନ୍ତରଣ ଭାଷାରେ ପ୍ରକାଶିତ ହୋଇଥାଏ । ଯେଉଁ ଭାଷାକୁ ଲିପ୍ୟନ୍ତରିତ ହୋଇଥାଏ ସେହି ଭାଷାର ଲିପିର କୌଣସି ବିଶେଷତ୍ୱ ଏଥିରେ ସଂଶ୍ଳିଷ୍ଟ ହୋଇନଥାଏ, କାରଣ ପୂର୍ବରୁ କୁହାଯାଇଥିବାନୁସାରେ ଲିପ୍ୟନ୍ତରିତ ଭାଷାର ସମସ୍ତ ବିଶେଷତ୍ୱ ଦ୍ୱିତୀୟ ଲିପିରେ ନିହିତ ହୋଇଥାଏ । ଲିପ୍ୟନ୍ତରଣ ସମୟରେ ବିଭିନ୍ନ ପ୍ରକାରର ବିଶେଷତ୍ୱ ପ୍ରତି ଧ୍ୟାନ ଦେବାକୁ ପଡ଼ିଥାଏ । ଲିପ୍ୟନ୍ତରଣ ସମୟରେ ଆମେ କେବଳ ଗୋଟିଏ ଲିପିକୁ ଅନ୍ୟ ଏକ ଲିପିରେ ପରିବର୍ତ୍ତନ କରିଥାଉ। ଲିପି ପରିବର୍ତ୍ତନ ଫଳରେ କେବଳ ପ୍ରଥମ ଲିପିର ପରିବର୍ତ୍ତିତ ରୂପ ନହୋଇ ତାହାର ଉଚ୍ଚାରଣ ସମାନତା, ବର୍ଣ୍ଣନା ଆଦି ବିଭିନ୍ନ ବିଶିଷ୍ଟତା ଦେଖିବାକୁ ମିଳିଥାଏ ।

ଲିପ୍ୟନ୍ତରଣ ଏପରି ଏକ ପ୍ରକ୍ରିୟା, ଯାହା ଭାଷାକୁ ବିଶ୍ୱ ଦରବାରରେ ପହଞ୍ଚାଇବାରେ ମୁଖ୍ୟ ଭୂମିକା ଗ୍ରହଣ କରିଥାଏ । ଏହା ଫଳରେ ଆମେ ଏକ ନିର୍ଦ୍ଦିଷ୍ଟ ଭାଷା ବା ସାହିତ୍ୟର ବ୍ୟାପକ ଉନ୍ନତି ସାଧନ କରି ପାରିବା । ଏହାର ସାହାଯ୍ୟରେ ଗୋଟିଏ ନିର୍ଦ୍ଦିଷ୍ଟ ଭାଷାକୁ ଜାଣି ନଥିବା ଅଥଚ ସେହି ଭାଷାରେ ରୁଚି ରଖୁଥିବା ଲୋକମାନଙ୍କୁ ସହଜରେ ଭାଷା ଶିକ୍ଷା ଦିଆଯାଇ ପାରିବ । ଲିପ୍ୟନ୍ତରଣ ଫଳରେ କେବଳ ମୂଳଭାଷାରେ ଲିପି ପରିବର୍ତ୍ତିତ ରୂପ ଧାରଣ କରିଥାଏ । ଏଥିରେ ମୂଳ ଭାଷାର ଅନ୍ୟ କୌଣସି ପରିବର୍ତ୍ତନ ହୋଇ ନଥାଏ । ଏହି ଲିପ୍ୟନ୍ତରଣ ଫଳରେ ଆମେ ଜାଣିନଥିବା ଭାଷାର ଲିପିକୁ ଜାଣିଥିବା ଭାଷାର ଲିପି ଅନୁସାରେ ଲେଖିପାରିବା । ଆମେ ଯେତେବେଳେ ଗୋଟିଏ ଭାଷାକୁ ଲେଖିବାକୁ ଚେଷ୍ଟାକରୁ, ପ୍ରଥମେ ତାହାର ଲିପି ଶିକ୍ଷା କରିଥାଉ, ପରେ ତାହାର ବ୍ୟାକରଣ ତଥା ଶବ୍ଦ ସୌଷ୍ଠଭ ଆଦି ଶିକ୍ଷା କରିଥାଉ । ଅନେକ ସମୟରେ ଲକ୍ଷ୍ୟ କରାଯାଏ ଯେ ଆମେ ରୁଚି ରଖୁଥିବା ଭାଷାର ଲିପିକୁ ସହଜରେ ଶିକ୍ଷା କରି ପାରିନଥାଉ ଫଳରେ ସେହି ଭାଷାକୁ ଶିକ୍ଷା କରି ପାଠ କରିବାରେ ଆମକୁ କଷ୍ଟ ହୋଇଥାଏ । କିନ୍ତୁ ଯଦି ଆମେ ଚାହୁଁଥିବା ଭାଷା ବା ସାହିତ୍ୟ ଆମେ ଜାଣିଥିବା ତଥା ନିଜ ମାତୃଭାଷାର ଲିପିରେ ପଢିବାକୁ ମିଳିଯାଏ, ତେବେ ତାହା ନିଶ୍ଚୟ ରୂପେ ଆମ ପାଇଁ ଖୁସିର ବିଷୟ ହେବ। ସେଥିପାଇଁ ଲିପ୍ୟନ୍ତରଣ ଏକ ପ୍ରମୁଖ ମାଧ୍ୟମ ରୂପେ ଗ୍ରହଣ କରାଯାଇପାରେ । ଆମେ ରୁଚି ରଖୁଥିବା ଭାଷା ତଥା ତାହାର ଲିପି ଜାଣି ନଥିବାରେ କୌଣସି ବିଶେଷ ଅସୁବିଧା ହୁଏ ନାହିଁ । କାରଣ ଏହା ସାହାଯ୍ୟରେ ଆମେ ଆମର ଇଚ୍ଛାନୁସାରେ ଯେ କୌଣସି ଏକ ନିର୍ଦ୍ଦିଷ୍ଟ ଭାଷାର ଐତିହ୍ୟ ତଥା ଅନ୍ୟାନ୍ୟ ଲିଖିତ କାଗଜ ପତ୍ରର ଲିପିକୁ ନିଜ ଲିପିରେ ପାଇପାରିବା । ଅର୍ଥାତ୍ ଆମେ ରୁଚି ରଖୁଥିବା ଲିପିକୁ ନିଜ ଭାଷା ସାହିତ୍ୟର ଲିଖିତ ଲିପିରେ ପାଇ ପାରିବା। ଫଳରେ ଅନ୍ୟ ଭାଷା ସାହିତ୍ୟକୁ ପଢିବାରେ ତଥା ଜାଣିବାରେ ଅସୁବିଧା ହେବ ନାହିଁ ।

ଭାଷା ଓ ସାହିତ୍ୟର ବିକାଶ ତଥା ଅଗ୍ରଗତି ଫଳରେ ଲିପ୍ୟନ୍ତରଣର ଆବଶ୍ୟକତା ବିଶେଷ ଭାବରେ ଅନୁଭୂତ ହୋଇଥାଏ । ଏହି ଲିପ୍ୟନ୍ତରଣ ପ୍ରକ୍ରିୟା ଫଳରେ କୌଣସି ଗୋଟିଏ ଲିପି ଜାଣି ନଥିବା ଲୋକଟିଏ ସେହି ଭାଷାର ସମସ୍ତ ରଚନା, ସାହିତ୍ୟ ଧର୍ମଗ୍ରନ୍ଥ ଆଦି ସହଜରେ ପଢି ପାରିବ ଏବଂ ତାକୁ ସହଜରେ ମନେ ମଧ୍ୟ ରଖି ପାରିବ। କୌଣସି ଭାଷା ପ୍ରତି ଅଜ୍ଞ ଥିବା ଲୋକ ଜଣକ ସହଜରେ ସହି ଭାଷାର ରଚନାବଳୀକୁ ସହଜରେ ପଢି ପାରିବ । ଆମମାନଙ୍କ ଭାଷା ସାହିତ୍ୟରେ ଏପରି ଏକ ଏକ ଉଚ୍ଚାଙ୍ଗ ରଚନା ରହିଅଛି ଯାହା ବିଶ୍ୱ ଦରବାରରେ ଏ ଯାବତ ପହଞ୍ଚି ପାରିନାହିଁ । ଯାହାକୁ ସମସ୍ତଙ୍କ ନିକଟରେ ପହଞ୍ଚାଇବା ନିହାତି ଦରକାର ।

ଲିପ୍ୟନ୍ତରଣ ଫଳରେ ଜଣେ ଉର୍ଦ୍ଦୁ, ପାର୍ସୀ, ତେଲଗୁ, ତାମିଲି, ସ୍ପେନିସ୍, ଜର୍ମାନୀ, ଇଟାଲିଆନ୍ ଆଦି ଲିପି ନଜାଣି କେବଳ ଭାଷା ଜାଣିଥିଲେ ସେହି ଭାଷାର ବିଭିନ୍ନ ପ୍ରକାର ପ୍ରକାଶିତ ବିଷୟ ଗୁଡ଼ିକୁ ନିଜ ଭାଷାରେ ପଢି ପାରିବେ । ଅର୍ଥାତ୍ ମୂଳ ଭାଷାର ଲିପ୍ୟନ୍ତରଣ କରାଯାଇ ନିଜ ଭାଷାକୁ ତାହାକୁ ପରିବର୍ତ୍ତନ କରାଯାଇଥାଏ । ଯେପରିକି ଇଂରାଜୀରୁ ଓଡ଼ିଆ ଲିପନ୍ତରଣର ଉଦାହରଣ ନିଆଯାଇପାରେ ।

My name is Rama- ମାଇଁ ନେମ୍ ଇଜ୍ ରାମ

What is your name?- ହ୍ୱାଟ୍ ଇଜ୍ ୟୋର ନେମ୍?

ଲିପ୍ୟନ୍ତରଣ ଫଳରେ ମୂଳ ଇଂରାଜୀ ଲିପିର କେବଳ ପରିବର୍ତ୍ତନ ହେଲା ଏବଂ ତାହା ସ୍ଥାନରେ ଓଡ଼ିଆ ଲିପିର ବ୍ୟବହାର ହେଲା। ମାତ୍ର ଇଂରାଜୀ ଭାଷାର ଉଚ୍ଚାରଣ ଗତ ବୈଶିଷ୍ଟ୍ୟ, ଧ୍ୱନିଗତ ବୈଶିଷ୍ଟ୍ୟ କିମ୍ବା ସୃଷ୍ଟିଗତ ବୈଶିଷ୍ଟ୍ୟରେ କୌଣସି ପରିବର୍ତ୍ତନ ହୋଇନାହିଁ । ମାତ୍ର ଅନୁବାଦ ଫଳରେ ଇଂରାଜୀ ଅକ୍ଷର, ଧ୍ୱନିଗତ ଆଦି ସମସ୍ତ ବୈଶିଷ୍ଟ୍ୟର ପରିବର୍ତ୍ତନ ହୋଇଥାଏ। ପୁନଶ୍ଚ କୁହାଯାଇପାରେ ଯେ, ଲିପ୍ୟନ୍ତରଣ ଫଳରେ ଗୋଟିଏ ଭାଷା ତା'ର ସମଗ୍ର ରଚନାବଳୀ ତଥା ସେହି ଭାଷାର ଉଚ୍ଚାଙ୍ଗ ସାହିତ୍ୟକୃତି ଆଦିକୁ ସମଗ୍ର ବିଶ୍ୱ ପରିପ୍ରେକ୍ଷୀରେ ସମସ୍ତଙ୍କ ନିକଟରେ ପହଞ୍ଚାଇ ପାରିବ, ଫଳରେ କୌଣସି ଭାଷା ସାହିତ୍ୟ ଆଉ ଏକ ନିର୍ଦ୍ଦିଷ୍ଟ ଭୂଖଣ୍ଡ କିମ୍ବା ନିର୍ଦ୍ଦିଷ୍ଟ ସୀମାରେଖାରେ ବାନ୍ଧି ହୋଇ ରହିବ ନାହିଁ। ପ୍ରତ୍ୟେକ ଭାଷାର ସାହିତ୍ୟ ତଥା ତାହାର ସାଂସ୍କୃତିକ ବୈଭବକୁ ଆମେ ନିଜ ଭାଷାରେ ପଢି ପାରିବା ଫଳରେ ଆମେ ଗୋଟିଏ ନିର୍ଦ୍ଦିଷ୍ଟ ଅଞ୍ଚଳ ତଥା ନିର୍ଦ୍ଦିଷ୍ଟ ଭାଷାଭାଷୀର ଲୋକ ହୋଇମଧ୍ୟ ଅନ୍ୟ ଭାଷାର ନିଜର କରିପାରିବା।

ଇଂରାଜୀ-ଓଡ଼ିଆ ଲିପ୍ୟନ୍ତରଣ ଫଳରେ ଆମେ ଇଂରାଜୀ ଲିପି ନଜାଣିଥିଲେ ମଧ୍ୟ ଇଂରାଜୀ ପଢ଼ି ପାରିବା । ଇଂରାଜୀ ଜାଣିନଥିବା

ଲୋକମାନଙ୍କୁ ଇଂରାଜୀ ଶିଖାଇବାରେ ଏହି ସଫ୍ଟୱେୟାରଟି ବିଶେଷ ଫଳପ୍ରଦ ହୋଇପାରିବ । ଇଂରାଜୀ ଶିକ୍ଷା କରିବାକୁ ଆଗ୍ରହୀ ଲୋକ ମାନଙ୍କୁ ଏହା ସାହାଯ୍ୟରେ ପ୍ରଥମେ ଇଂରାଜୀ ଲିପି ଚିହ୍ନାଇ ଦିଆଯିବ, ପରବର୍ତ୍ତୀ ସମୟରେ ଇଂରାଜୀ ଶବ୍ଦ ଗଠନ ଶୈଳୀ ତଥା ଇଂରାଜୀ ବାକ୍ୟ ସଂରଚନା ବିଷୟରେ ବିଶେଷ ଶିକ୍ଷା ଦିଆଯାଇପାରିବ । ଇଂରାଜୀରେ ଲେଖା ହୋଇଥିବା କୌଣସି ସରକାରୀ କାଗଜ ପତ୍ର, ଦଲିଲ, ଇଂରାଜୀ ସାହିତ୍ୟ ଆଦିକୁ ପାଠ କରିପାରିବ। ଏହା ଫଳରେ ଆମକୁ ଇଂରାଜୀ ଲିପି ଜାଣିବାର କୌଣସି ଆବଶ୍ୟକତା ପଡ଼ିବ ନାହିଁ । କାରଣ ଆମେ ଲିପ୍ୟନ୍ତରଣ ଫଳରେ ଇଂରାଜୀ ପାଠ କରିପାରିବା । ଏହା ଫଳରେ ଇଂରାଜୀରେ ଲିଖିତ ନାମ ଆଦିକୁ ଓଡ଼ିଆରେ ଲିପ୍ୟନ୍ତରଣ କରିପାରିବା ଯାହାକି ଆମକୁ ସରକାରୀ କାଗଜପତ୍ରରେ କାମଦେବ। ପୁନଶ୍ଚ ଓଡ଼ିଶା ସରକାରଙ୍କ ଇ-ଗଭର୍ନାନ୍ସ ଫଳରେ ପ୍ରାୟ ପ୍ରତ୍ୟେକ ସରକାରୀ ଅଫିସ୍‌ରେ ବହୁଳମାତ୍ରାରେ ସରକାରୀ କାଗଜପତ୍ରକୁ ଓଡ଼ିଆରେ ଲେଖିବାର ଆବଶ୍ୟକତା ପଡ଼ିବ, ଏଥିରେ ସମୟ ତଥା ଖର୍ଚ୍ଚର ପରିମାଣ ଅଧିକ ହେବ । ମାତ୍ର ଏହି ଇଂରାଜୀ-ଓଡ଼ିଆ ଲିପ୍ୟନ୍ତରଣ ଫଳରେ ଆମେ ଇଂରାଜୀରେ ଲିଖିତ ସମସ୍ତ ନାମ, ଜାଗାର ନାମ, ସଂଖ୍ୟା ଇତ୍ୟାଦିର ପରିବର୍ତ୍ତନ ଅଳ୍ପ ସମୟ ମଧ୍ୟରେ କରି ଦେଇପାରିବା ।

ଏହି ଲିପ୍ୟନ୍ତରଣ ଫଳରେ ଆମେ ନାଗରିକ ମାନଙ୍କୁ ଦିଆଯାଉଥିବା ପରିଚୟପତ୍ର ଆଦିର ନାମ ପରିବର୍ତ୍ତନ କରିପାରିବା, ପୂର୍ବରୁ ରହିଥିବା ତଥା ଆଗକୁ ବ୍ୟବହାର ହେବାକୁ ଥିବା ନାମ ଆଦିକୁ ସହଜରେ ଲିପ୍ୟନ୍ତରଣ କରି ଓଡ଼ିଆ ଲିପିରେ ଲେଖି ପାରିବା। ସରକାରୀ ସ୍ତରରେ ଦେଖିବାକୁ ଗଲେ ଏହିଭଳି ନାମ, ଜାଗାର ନାମ, ପରିଚୟ ପତ୍ର ଇତ୍ୟାଦିକୁ ପରିବର୍ତ୍ତନ କରିବାପାଇଁ ବ୍ଲକ୍ ପଞ୍ଚାୟତ, ମ୍ୟୁନିସିପାଲିଟି, ସଚିବାଳୟ ଆଦି କାର୍ଯ୍ୟାଳୟରେ ଏହାକୁ ଆମେ ବ୍ୟବହାର କରି ଇଂରାଜୀ ଲିପି ପରିବର୍ତ୍ତେ ଓଡ଼ିଆ ଲିପିରେ ଲେଖି ପାରିବା।

ଇଂରାଜୀ ଭାଷାର ଶୁଦ୍ଧ ଉଚ୍ଚାରଣରେ ଏହା ଆମକୁ ବିଶେଷ ସହାୟକ ହେବ, କାରଣ ଆମେ ଇଂରାଜୀ ଶବ୍ଦ, ବାକ୍ୟ ଆଦିକୁ ମନଇଚ୍ଛା ଉଚ୍ଚାରଣ କରିଥାଉ, ଯାହା ସମୟ ସମୟରେ ଭୁଲ୍ ମଧ୍ୟ ହୋଇଥାଏ; କିନ୍ତୁ ଏହି ଲିପ୍ୟନ୍ତରଣ ଆମକୁ ସେପରି ଭୁଲ୍ କରିବାକୁ ଦେବନାହିଁ । ପୂର୍ବରୁ କୁହାଯାଉଛି ଯେ ଲିପ୍ୟନ୍ତରଣରେ ମୂଳ ଭାଷାର କେବଳ ଲିପିଗତ ପରିବର୍ତ୍ତନ ହୋଇଥାଏ, ତାହାର ଉଚ୍ଚାରଣ ଆଦିରେ କୌଣସି ପରିବର୍ତ୍ତନ ହୁଏନାହିଁ। ତେଣୁ ଓଡ଼ିଆ ଲିପିରେ ଲିଖିତ ଇଂରାଜୀ ଶବ୍ଦ, ବାକ୍ୟ ଆଦିର ଉଚ୍ଚାରଣରେ ତ୍ରୁଟି ପରିଲକ୍ଷିତ ହୁଏ ନାହିଁ । ତେଣୁ ଇଂରାଜୀ ଓଡ଼ିଆ ଲିପ୍ୟନ୍ତରଣ ଆମକୁ ଠିକ୍ ଇଂରାଜୀ ଉଚ୍ଚାରଣରେ ସହାୟକ ହେବ ।

ଇଂରାଜୀ ପଢିପାରୁନଥିବା ଅଥଚ ବୁଝି ପାରୁଥିବା ଲୋକମାନଙ୍କ ପାଇଁ ଏହା ବିଶେଷ ସହାୟକ ହେବ। ଏହାକୁ ଆମେ ମୋବାଇଲ୍ ଫୋନ୍, ଏ.ଟି.ଏମ୍, କମ୍ପ୍ୟୁଟର ଆଦିରେ ବ୍ୟବହାର କରିପାରିବା । ଓଡ଼ିଆ ଲିପିରେ ଆମେ ମୋବାଇଲ୍ ପରିଚାଳନା, ଏଟିଏମ ପରିଚାଳନା, କମ୍ପ୍ୟୁଟର ପରିଚାଳନାପାଇଁ ନିର୍ଦ୍ଦେଶାବଳୀ ଲିପିବଦ୍ଧ କରିପାରିବା ଫଳରେ ଇଂରାଜୀ ଲିପି ଜାଣିନଥିବା ଲୋକମାନେ ମଧ୍ୟ ଏହାକୁ ଚଲାଇ ପାରିବେ ଏବଂ ବ୍ୟବହାର ମଧ୍ୟ କରିପାରିବେ ।

ଶିକ୍ଷା କ୍ଷେତ୍ରରେ ଏହା ବିଶେଷ ସାହାଯ୍ୟ କରିପାରିବ । ଇଂରାଜୀରେ ଲିଖିତ ରାଇମ୍ (Rhyme) ଆଦିକୁ ଓଡ଼ିଆ ଲିପିରେ ଲେଖି ସହଜରେ ଶିକ୍ଷାକରି ମନେ ରଖିପାରିବା । ଇଂରାଜୀ ଲିପି ଶିକ୍ଷା କରିବାରେ ମଧ୍ୟ ଏହା ବିଶେଷ ସାହାଯ୍ୟ କରିବ । ଇଂରାଜୀରେ ଲିଖିତ ସଂଖ୍ୟା ଆଦିକୁ ଓଡ଼ିଆରେ ଲେଖି ପାରିବା । ଗାଣିତିକ ସଂଖ୍ୟାକୁ ମଧ୍ୟ ଓଡ଼ିଆ ଲିପିରେ ଲେଖିପାରିବା । ଯାହା ଇଂରାଜୀ ଲିପି ଶିକ୍ଷା ନକରି ମଧ୍ୟ ସହଜରେ ହୋଇପାରିବ । ଇଂରାଜୀ ଭାଷା ଶିକ୍ଷା କରିବାକୁ ଆଗ୍ରହୀ ଲୋକ ତଥା ଆଗ୍ରହୀ ଛାତ୍ରଛାତ୍ରୀ ମାନଙ୍କୁ ଏହା ବିଶେଷ ସାହାଯ୍ୟ କରିବ । ଇଂରାଜୀ ଭାଷାରେ ଲିଖିତ କାହାଣୀ, ଗୀତ, ଉପନ୍ୟାସ ଇତ୍ୟାଦିକୁ ଲିପ୍ୟନ୍ତରଣ କରି ଆମେ ଓଡ଼ିଆ ଲିପିରେ ଲେଖି ପାରିବା । ଓଡ଼ିଆ ଭାଷାର ସୁରକ୍ଷା ତଥା ଭବିଷ୍ୟତ ବଂଶଧରମାନଙ୍କ ନିମନ୍ତେ ବ୍ୟବହାରକ୍ଷମ କରିବାପାଇଁ ହେଲେ ଏହି କାର୍ଯ୍ୟଗୁଡ଼ିକ ବିଷୟରେ ଯତ୍ନବାନ ହେବା ଏକାନ୍ତ ଆବଶ୍ୟକ। ଯୁଗର ତଥା ଯୁବଗୋଷ୍ଠୀର ଆବଶ୍ୟକତାକୁ ହତାଦର କରି ରକ୍ଷଣଶୀଳ ମନୋବୃତ୍ତି ପରିହାର କରିବାର ବେଳେ ଏବେ ଉପସ୍ଥିତ। ଏହାର ସତ୍ ଉପଯୋଗରେହିଁ ଓଡ଼ିଆ ଭାଷାର ଭବିଷ୍ୟତ ନିର୍ଭର କରେ।

**ସହାୟକ ଗ୍ରନ୍ଥସୂଚୀ**


1. ଦିପଂକର ଏ.ଆର୍ ଇ-କମର୍ସ ଫ୍ରେଣ୍ଡସ୍ ପବ୍ଲିଶର୍ସ, କଟକ
2. ଧଳ ଗୋଲକବିହାରୀ,ଧ୍ୱନିବିଜ୍ଞାନ, ଓଡ଼ିଶା ରାଜ୍ୟ ପାଠ୍ୟପୁସ୍ତକ ପ୍ରଣୟନ ଓ ପ୍ରକାଶନ ସଂସ୍ଥା, ଭୁବନେଶ୍ୱର
3. ଧଳ ଗୋଲକବିହାରୀ, ଭାଷାଶାସ୍ତ୍ର ପରିଚ, ଓଡ଼ିଶା ରାଜ୍ୟ ପାଠ୍ୟପୁସ୍ତକ ପ୍ରଣୟନ ଓ ପ୍ରକାଶନ ସଂସ୍ଥା, ଭୁବନେଶ୍ୱର, ୧୯୭୪
4. ପତି ଚନ୍ଦ୍ରଶେଖର, ଓଡ଼ିଆ ଭାଷା ବ୍ୟାକରଣ ସୌରଭ, ଓଡ଼ିଶା ବୁକ୍ ଏମ୍ପୋରିଅମ୍, କଟକ
5. ବନିକ୍ ରାନୁ, ଡି.ଟି.ପି, ଫ୍ରେଣ୍ଡସ୍ ପବ୍ଲିଶର୍ସ, କଟକ
6. ମହାନ୍ତି ବଂଶୀଧର, ଓଡ଼ିଆ ଭାଷାର ଉତ୍ପତ୍ତି ଓ କ୍ରମବିକାଶ, ଫ୍ରେଣ୍ଡସ୍ ପବ୍ଲିଶର୍ସ, କଟକ,୧୯୯୫
7. ମିଶ୍ର ଦେବକାନ୍ତ, ଆସ ଜାଣିବା କମ୍ପ୍ୟୁଟର, ଫ୍ରେଣ୍ଡସ୍ ପବ୍ଲିଶର୍ସ, କଟକ
8. ମିଶ୍ର ଦେବକାନ୍ତ, ମୌଳିକ କମ୍ପ୍ୟୁଟର ଶିକ୍ଷା, ଫ୍ରେଣ୍ଡସ୍ ପବ୍ଲିଶର୍ସ, କଟକ